


# ବଣାଇଁ ଶିକ୍ଷା-ଇତିହାସ

ସୁନ୍ଦରଗଡ଼ ଜିଲାର ବଣାଇ ସବଡିଭିଜନ ପୂର୍ବତନ ବଣାଇ ରାଜ୍ୟକୁ ନେଇ ଗଠିତ । ଏକାଦଶ ଶତାବ୍ଦୀରେ ଏହି ରାଜ୍ୟରେ କଦମ୍ବ ବଂଶ ସ୍ଥାପିତ ହୋଇଥିଲା ଏବଂ ଆଜି ସୁଦ୍ଧା ସେହି ବଂଶର ୫୮ ଜଣ ରାଜା ରାଜତ୍ୱ କରିଅଛନ୍ତି । ରାଜ୍ୟଟି ୧୭୪୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସମ୍ବଲପୁର ହୀରଖଣ୍ଡ ବାଦଶାଙ୍କ କର୍ତ୍ତୃତ୍ୱାଧୀନରେ ଥିଲା ଏବଂ ୧୭୪୨ ରୁ ୧୮୨୬ ପର୍ଯ୍ୟନ୍ତ ନାଗପୁରର ଭୋଁସଲା ଏହାର ପତ୍ରଗ୍ରାହକ ହୋଇ ଚୌଥ ଓ ସିର ଦେଶମୁଖୀ ଆଦାୟ କରୁଥିଲେ ।

ଇଷ୍ଟଇଣ୍ଡିଆ କମ୍ପାନୀ ରାଜତ୍ୱ ବଣାଇ ରାଜ୍ୟରେ ପ୍ରତିଷ୍ଠିତ ହୋଇଥିଲା ଅଗଷ୍ଟ ମାସ ତା ୧୨ରିଖ ୧୮୨୬ ଖ୍ରୀଷ୍ଟାବ୍ଦରେ ବଙ୍ଗଳା ଗଭର୍ଣ୍ଣର ଜେନେରାଲ ଲର୍ଡ଼ ଆମହର୍ଷ୍ଟଙ୍କ ସମୟରେ । ସେ ପର୍ଯ୍ୟନ୍ତ ରାଜ୍ୟରେ ଅଶାନ୍ତି ଲାଗି ରହିଥିଲା ଏବଂ ଶାସକମାନେ ଶିକ୍ଷାପ୍ରତି ଉଦାସୀନ ହୋଇଥିଲେ ।

୧୮୩୫ ଖ୍ରୀଷ୍ଟାବ୍ଦ ବେଳକୁ ରାଜା ଶିବନାରାୟଣ ଇନ୍ଦ୍ରଦେଓ ଭଗିନୀପତି ସୁରେନ୍ଦ୍ର ଓ ଭଗବାନ ଶତପଥୀଙ୍କୁ ବିଦ୍ୟାଧ୍ୟୟନ ପାଇଁ ବାରାଣସୀ ପଠାଇଥିଲେ । ସିପାହୀ ବିଦ୍ରୋହ ପରେ ପରେ ରାଜାହେଲେ ରାଜା ବାହାଦୁର ଦୟାନିଧି ଇନ୍ଦ୍ରଦେଓ ୧୮୬୨ ଖ୍ରୀଷ୍ଟାବ୍ଦରେ । ସେ ରାଜବାଟୀ ମଧ୍ୟରେ ଥିବା ଦଉଳବେଦୀ ନିକଟରେ ଗୋଟିଏ ଚଉପାଢ଼ୀ ବସାଇ ଥିଲେ । ପୁରୀ ନିକଟବର୍ତ୍ତୀ ଶାସନ ବଳଭଦ୍ରପୁରରୁ ଆଗତ ପଣ୍ଡିତ ପଦ୍ମଲଭ ଷଡ଼ଙ୍ଗୀ ସେଠାରେ କାବ୍ୟ, ଜ୍ୟୋତିଷ ଓ ଆୟୁର୍ବେଦ ଶିକ୍ଷା ଦେଉଥିଲେ । ସ୍ୱର୍ଗତ ଦାମୋଦର ପୁଜାହାରୀ, ଶ୍ରୀଯୁକ୍ତ ଚନ୍ଦ୍ରଧର ମିଶ୍ର, ଶ୍ରୀ କେଶବ ପାଢ଼ୀ ପ୍ରମୁଖ ଛାତ୍ରମାନେ ସେଠାରେ ଶିକ୍ଷାଲାଭ କରୁଥିଲେ ।

ବର୍ତ୍ତମାନ ରାଜା ଶ୍ରୀ କଦମ୍ବକେଶରୀ ଚନ୍ଦ୍ରଦେବଦେଓଙ୍କ ପିତାମହ ରାଜା ନୀଳାମ୍ବର ଚନ୍ଦ୍ରଦେଓ ୧୮୯୭ ଖ୍ରୀଷ୍ଟାବ୍ଦରେ ଉପରୋକ୍ତ ଚଉପାଢ଼ୀଟି ଉଠି ଯାଇଥିଲେହେଁ ରାଜା ନୀଳାମ୍ବରଙ୍କ ଗୋଟିଏ ଆଲୋଚନା ସଭା ଥିଲା । ସେଥିରେ ଗଦ୍ୟ କୁମାର ସମ୍ଭବ ଲେଖକ ଜନାର୍ଦ୍ଦନ ପଣ୍ଡା, ଗଦ୍ୟ ବତ୍ରିଶ ସିଂହାସନ ଲେଖକ ବିଦ୍ୟାଧର ଜେନା, ବାଣୁଆ ଶାସ୍ତ୍ର ଲେଖକ ଯଦୁ ଫଡ଼କାର ଓ କାବ୍ୟ ବିଶାରଦ ଜୟଦେବ ଶତପଥୀ ଯୋଗ ଦେଉଥିଲେ । ରାଜା ନୀଳାମ୍ବର ନିଜେ କୌତୁକ କଳାନିଧି ନାମରେ ଗୀତିକାବ୍ୟ ସମ୍ବଲପୁର ହିତୈଷିଣୀ ପ୍ରେସ୍‌ରେ ୧୮୯୭ ଖ୍ରୀଷ୍ଟାବ୍ଦରେ ଛପାଇ ଥିଲେ ।

ବଣାଇ ରାଜ୍ୟରେ ଆଧୁନିକ ଧରଣର ସ୍କୁଲ ରାଜବାଟୀ ସ୍କୁଲ ପ୍ରଥମେ ସ୍ଥାପିତ ହେଲା ୧୯୦୨ ଖ୍ରୀଷ୍ଟାବ୍ଦରେ । ସ୍ୱର୍ଗୀ କଳାକର ଦାସ, ନୀଳମଣି ବୈଦ୍ୟ, ବାଞ୍ଛାନିଧି ବେହେରା, ପିତାମ୍ବର ଦଳେଇ,

ହରିହର କେଉଟ ଓ ହେମମୋହନ ସାହୁ ପ୍ରଥମେ ସେହି ସ୍କୁଲରେ ଭର୍ତ୍ତିହେଲେ ଡିସେମ୍ବର ମାସ ତା ୨୦ ରିଖ ୧୯୦୨ ଖ୍ରୀଷ୍ଟାବ୍ଦରେ ସମ୍ବଲପୁରରୁ ଆଗତ ଶ୍ରୀ ମଧୁସୂଦନ ପଣ୍ଡା ଓ ଶ୍ରୀ ଗଦାଧର ପାଣିଗ୍ରାହୀ ଯଥାକ୍ରମେ ହେଡ୍ ପଣ୍ଡିତ ଓ ସେକେଣ୍ଡ ପଣ୍ଡିତ ଭାବରେ ଯୋଗଦେଲେ ।

ସେହି ରାଜବାଟୀ ସ୍କୁଲର ଛାତ୍ରସଂଖ୍ୟା ଅଳ୍ପେ ଅଳ୍ପେ ବଢିବାକୁ ଲାଗିଲା । ତା ୧୫-୧୨-୧୯୦୮ ଖ୍ରୀଷ୍ଟାବ୍ଦରେ ଶ୍ରୀମତୀ ବ୍ରଜବାଳା ଦେବୀ ପ୍ରମୁଖ ୭ ଜଣ ବାଳିକା ଉକ୍ତ ସ୍କୁଲରେ ଯୋଗଦେଲେ । ତା ୮-୩-୧୯୧୦ ରେ ଉକ୍ତ ସ୍କୁଲଟି ଉଚ୍ଚପ୍ରାଥମିକ ସ୍କୁଲରେ ପରିଣତ ହେଲା ଏବଂ ସ୍କୁଲରେ ଛାତ୍ରସଂଖ୍ୟା ନିମ୍ନମତେ ବୃଦ୍ଧି ପାଇଲା ।

| | ଛାତ୍ର | ଛାତ୍ରୀ | ମୋଟ |
|---|---|---|---|
| ତା ୮-୩-୧୯୧୦ | ୫୦ | ୨ | ୫୨ |
| ତା ୨୧-୮-୧୯୧୧ | ୪୯ | ୪ | ୫୩ |
| ତା ୨୨-୧୨-୧୯୧୨ | ୫୪ | ୧୦ | ୬୪ |
| ତା ୯-୪-୧୯୧୩ | ୬୫ | ୧୧ | ୭୬ |
| ତା ୨୪-୧-୧୯୧୪ | ୭୫ | ୧୫ | ୯୦ |
| ତା ୧-୧୦-୧୯୧୪ | ୧୦୬ | ୧୮ | ୧୨୪ |

୧୯୧୪ ରେ ଶିକ୍ଷକ ସଂଖ୍ୟା ୩ କୁ ବୃଦ୍ଧି ପାଇଲା ଏବଂ

୧ ) ରାମକୃଷ୍ଣ ନାଥ — ପ୍ରଧାନ ଶିକ୍ଷକ

୨ ) ବୃନ୍ଦାବନ ପଣ୍ଡା — ସହକାରୀ

୩ ) ଦାନାମ୍ବର ନାଥ — ମନିଟର ହେଲେ ।

୧୯୦୧ ଖ୍ରୀଷ୍ଟାବ୍ଦରେ ରାଜା ଶ୍ରୀ ଧରଣୀ ଧର ଭଞ୍ଜ ଦେଓ ଦେବ ଶାସନ କ୍ଷମତା ଗ୍ରହଣ କଲେ ଏବଂ ରାଜ୍ୟମଧ୍ୟରେ ଶିକ୍ଷାର ବିସ୍ତାର ପାଇଁ ବିଶେଷ ଯତ୍ନ କଲେ । ତାଙ୍କର ଯତ୍ନରେ ୧୯୦୭ ରୁ ୧୯୧୩ ମଧ୍ୟରେ ନିମ୍ନଲିଖିତ ସ୍ଥାନରେ ଆଠୋଟି ପ୍ରାଥମିକ ସ୍କୁଲ ସ୍ଥାପିତ ହେଲା ।

୧ ) ବଣାଇ ଗଡ, ୨ ) ଭୁମକଲା, ୩ ) ଶରଧା ପୁର, ୪ ) ଢାଙ୍ଗଲା,
୫ ) ବଙ୍କାକୁଳ, ୬ ) ବାଙ୍କି, ୭ ) କଲେଇପୋଷ, ୮ ) କୁଳିପୋଷ,

ଛାତ୍ର ଛାତ୍ରୀ ମାନଙ୍କୁ ଭାଷା ଶିକ୍ଷା ଦେବା ପାଇଁ ପ୍ରତି ପ୍ରାଇମେରୀ ସ୍କୁଲରେ ଜଣେ କଣ୍ଠକ ବା ପୁରୀ ଢଲାର ଶିକ୍ଷକ ରଖିବା ବ୍ୟବସ୍ଥା ଥିଲା ଏବଂ ମୂଳ ବସନ୍ତ ଗ୍ରାମର ଶ୍ରୀଯୁକ୍ତ ବୈଦ୍ୟନାଥ କର ଏହି-

ସମୟରେ ପ୍ରଥମେ ଆସିଥିଲେ । ତତ୍‌କାଳୀନ ପରିଦର୍ଶକ ଏ. ଜ. ହପ୍‌ହ୍ୱଙ୍କ ବିବରଣୀରୁ ଜଣାଯାଏ ଯେ ସମୁଦାୟ ରାଜ୍ୟରେ ଜଣେ ଇନସ୍‌ପେକ୍ଟିଂ ପଣ୍ଡିତ, ୧୬ ଜଣ ଶିକ୍ଷକ ଓ ୨ ଜଣ ମକ୍ତବ ଥିଲେ । ଶିକ୍ଷା ବିଭାଗର ପରିଦର୍ଶକ ହିସାବରେ ଶ୍ରୀଯୁକ୍ତ ନଟବର ମିଶ୍ର ପ୍ରଥମ ଇନସପେକ୍ଟିଂ ପଣ୍ଡିତ ଥିଲେ ଏବଂ ତାଙ୍କ ପରେ ଶ୍ରୀ ଅଭିମନ୍ୟୁ ମିଶ୍ର ପରିଦର୍ଶକ ହେଲେ ।।

୧୯୧୬ ଖ୍ରୀଷ୍ଟାବ୍ଦରେ ଲଦୁଣୀ ପଡ଼ା, କେନାଭେଠା, ସାତକୁଠା, ଘୋଷରି ପ୍ରଭୃତି ସ୍ଥାନରେ ୧୬ ଟି ପ୍ରାଥମିକ ସ୍କୁଲ ସ୍ଥାପିତ ହେଲା । ତନ୍ମଧ୍ୟରୁ ୩ଟି ଉଚ୍ଚପ୍ରାଥମିକ ସ୍କୁଲ ବଣାଇଗଡ, ଜାଙ୍ଗଲା ଓ ଲଦୁଣୀ ପଡାରେ ରହିଲା । ସେହି ବର୍ଷ ସ୍କୁଲ ବିଭାଗ ସବଇନସ୍‌ପେକ୍ଟର ଶୃଙ୍ଖଳା ଖୋଲାଗଲା ଓ ଶ୍ରୀ ଗଣେଶ୍ୱର ଭଞ୍ଜ ପ୍ରଥମ ପରିଦର୍ଶକ ନିଯୁକ୍ତ ହେଲେ । ସେ ତା ୧୬ - ୨ - ୧୯୧୯ ଖ୍ରୀଷ୍ଟାବ୍ଦରୁ ଫେବୃୟାରୀ ୧୯୨୨ ପର୍ଯ୍ୟନ୍ତ ପରିଦର୍ଶକ ହେଲେ । ୧୯୨୨ ରେ କିଛି ଦିନ ପାଇଁ ବାବୁ ଶ୍ରୀ ବୈଦ୍ୟନାଥ କର ପରିଦର୍ଶକ ହେଲେ । ୧୯୨୩ ରୁ ୧୯୪୭ ପର୍ଯ୍ୟନ୍ତ ଶ୍ରୀ ନାରାୟଣ ନନ୍ଦ ସ୍କୁଲ ପରିଦର୍ଶକ ଥିଲେ ।

୧୯୧୮ ଖ୍ରୀଷ୍ଟାବ୍ଦ ଫେବୃୟାରୀ ତା ୧୬ ରିଖରେ ଶ୍ରୀଯୁକ୍ତ ଏ. ଜ. ହପ୍‌ହ୍ୱ ମି:ଇ:ସ୍କୁଲ ଅନୁମୋଦନ କଲେ ଏବଂ ସ୍କୁଲଟି ବାସୁଳୀ ମନ୍ଦିର ନିକଟବର୍ତ୍ତୀ ରଘୁନାଥପୁର ପାଠଶାଳାକୁ ଉଠି ଆସିଲା । ହପ୍‌ହ୍ୱ ସାହେବ ମି:ଇ: ସ୍କୁଲ ଘର ପାଇଁ ପ୍ରସ୍ତାବ ଦେଇଥିଲେ ଏବଂ ବର୍ତ୍ତମାନର ଇ:ଟି: ସ୍କୁଲକୁ ପରିବର୍ତ୍ତିତ ହେଲା, ୧୯୨୭ ଖ୍ରୀଷ୍ଟାବ୍ଦରେ ଜାନୁୟାରୀ ମାସ ତା ୩ ରିଖରେ ।

ବଣାଇଁ ରାଜ୍ୟରେ ମି:ଇ: ସ୍କୁଲକୁ ଛାଡ଼ି ଯେଉଁ ୨୫ ଟି ପ୍ରାଇମେରୀ ସ୍କୁଲ ଥିଲା ତହିଁର ଛାତ୍ର ସଂଖ୍ୟା ମଧ୍ୟ ବୃଦ୍ଧି ହେବାକୁ ଲାଗିଲା ।

| | ସ୍କୁଲସଂଖ୍ୟା | ଶିକ୍ଷକ | ଛାତ୍ର | ଛାତ୍ରୀ | ମୋଟ |
|---|---|---|---|---|---|
| ୧୯୧୮ | ୨୫ | ୫୨ | ୩୦୪ | ୨୮ | ୩୩୨ |
| ୧୯୨୦ | ୨୫ | ୫୨ | ୩୨୮ | ୩୨ | ୩୬୦ |
| ୧୯୨୨ | ୨୭ | ୫୮ | ୪୮୨ | ୪୨ | ୫୨୪ |
| ୧୯୨୬ | ୩୨ | ୬୬ | ୭୨୦ | ୬୨ | ୭୮୨ |

ଶ୍ରୀଯୁକ୍ତ ବଳଭଦ୍ର ଦାସ ୧୯୧୮ ରୁ ୧୯୨୧ ପର୍ଯ୍ୟନ୍ତ ମି:ଇ: ସ୍କୁଲର ହେଡମାଷ୍ଟର ହେଲେ । ଶ୍ରୀଯୁକ୍ତ ଜୟକୃଷ୍ଣ ମହାପାତ୍ର ୧୯୨୧ ରେ ପ୍ରଧାନ ଶିକ୍ଷକଭାବରେ ଯୋଗଦେଇ ୧୯୩୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସ୍କୁଲର ସର୍ବବିଧ ଉନ୍ନତି କରାଇଥିଲେ । ସେ କଳାହାଣ୍ଡି ଓ କାପିଠାଲ୍

ହା:ଇ. ସ୍କୁଲରେ ଶିକ୍ଷକତା କରି ୧୯୫୬ ରୁ ଅବସର ନେଇଛନ୍ତି । ଶ୍ରୀଯୁକ୍ତ ଭରତଚନ୍ଦ୍ର ନାୟକ ୧୯୨୧ ରୁ ୧୯୨୯ ପର୍ଯ୍ୟନ୍ତ ଏହି ଗ୍ରାମର ଶିକ୍ଷା ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । ଶ୍ରୀଯୁକ୍ତ ନୀଳମଣି ଆଚାର୍ଯ୍ୟ ପ୍ରଭୃତି କର୍ମଗୃହ ଓ ସବଂଶୀ ସଦୁମଣି ପୁରୋହିତ, ରଘୁ ବିଶ୍ୱାଳ, ଘନଶ୍ୟାମ ଦଣ୍ଡପାଟ ପ୍ରଭୃତିଙ୍କ ସହଯୋଗରେ ପ୍ରାଥମିକ ଶିକ୍ଷା ବାଧ୍ୟତାମୂଳକ କରିବାକୁ ଯାଇ ଆଶିଂକ କୃତକାର୍ଯ୍ୟ ହୋଇଥିଲେ ।

ବର୍ତ୍ତମାନ ଇ:ଟି: ସ୍କୁଲ ଘରେ ୧୯୩୮ ରେ ପ୍ରଥମ ସେକେଣ୍ଡାରୀ ସ୍କୁଲ ସ୍ଥାପିତ ହୋଇଥିଲା ଶ୍ରୀଯୁକ୍ତ ନିତ୍ୟାନନ୍ଦ ସୁତାର ଓ ଶ୍ରୀ ବିରେନ୍ଦ୍ର କୁମାର ମିଶ୍ର ପ୍ରମୁଖ ଆଠଜଣ ଛାତ୍ରଙ୍କୁ ନେଇ । ଶ୍ରୀଯୁକ୍ତ ଲଳିତମୋହନ ବିଶ୍ୱାଳ, ଶ୍ରୀ ସୁରେନ୍ଦ୍ରନାଥ ମିଶ୍ର ଓ ଶ୍ରୀ ସାଧୁଚରଣ ମହାରଣା ସେଥିରେ ପ୍ରଥମେ ଶିକ୍ଷାଦାନ କରିଥିଲେ । ମୟୁରଭଞ୍ଜ ନିବାସୀ ଶ୍ରୀ ହରେକୃଷ୍ଣ ପଟ୍ଟନାୟକ ବି.ଏ. ପ୍ରଥମ ପ୍ରଧାନ ଶିକ୍ଷକ ହୋଇଥିଲେ । ଏହି ସ୍କୁଲଟି ଦୁଇବର୍ଷ ପରେ ବନ୍ଦ ହୋଇଥିଲା ।

୧୯୪୫ ଖ୍ରୀଷ୍ଟାବ୍ଦରେ ରାଜା ଧରଣୀଧର ହାଇସ୍କୁଲ ସ୍ଥାପିତ ହେଲା । କେ.ସାହେବ ଧରଣୀଧର ଇନ୍ଦ୍ରଦେଓ ଦେବ ବାର୍ଷିକ ୨୦ ହଜାର ହିସାବରେ ବାର୍ଷିକ ୨୦ ହଜାର ଟଙ୍କା ଗୃହ ଓ ଉପକରଣ ପାଇଁ ଦେଇଥିଲେ ।

୧୯୪୫ ଖ୍ରୀଷ୍ଟାବ୍ଦରେ ତତ୍‌କାଳୀନ ଦେଓ୍ୟାନ ରାଏସାହେବ ହରିପ୍ରସାଦ ଦେବ ଗୋଟିଏ ହାଇସ୍କୁଲ ନିର୍ମାଣ ସମିତି ଗଠନ କରିଥିଲେ । ସେଥିରେ ସଂଶ୍ଳିଷ୍ଟ ପ୍ରେମ ବିଶ୍ୱାଳ ଗମ୍ଭା ମାଝାନ୍ତ, ଖୁଣ୍ଟଗାଁ ଜମିଦାର ଶ୍ରୀ ବଳରାମ ମହାପାତ୍ର ଓ ଶ୍ରୀ କ୍ଷେତ୍ର ମାଝୀ ଦେଓ ପ୍ରଧାନ ମେମ୍ବର ହୋଇଥିଲେ । ୧୯୪୮ ରେ ହାଇସ୍କୁଲ ନୂତନ ଗୃହକୁ ଆସିଲା ଏବଂ ସେହିଦିନ ଠାରୁ ଶିକ୍ଷା କ୍ଷେତ୍ରରେ ଉନ୍ନତି ହେଲା !

୧୯୪୮ ଖ୍ରୀଷ୍ଟାବ୍ଦରେ ରାଜ୍ୟମିଶ୍ରଣ ସମୟରେ ପ୍ରାଥମିକ ଶିକ୍ଷାର ପରିଚାଳନା ଦାୟିତ୍ୱରେ ଥିଲେ ଜଣେ ଡେପୁଟୀଇନ୍‌ସପେକ୍ଟର ଅଫସ୍କୁଲସ୍ ଓ ଜଣେ ସବଇନ୍‌ସ୍‌ପେକ୍ଟର ଅଫସ୍କୁଲସ୍ । ଏହାପରେ ବିଦ୍ୟାଳୟ ସଂଖ୍ୟା ଦ୍ରୁତବେଗରେ ବଢ଼ିବାକୁ ଲାଗିଲା ଓ ଏହାର ପରିଚାଳନା ପାଇଁ ଅବଇନ୍‌ସପେକ୍ଟର ଅଫସ୍କୁଲସ୍ ମଧ୍ୟ ଆବଶ୍ୟକୀୟ ପରିମାଣରେ ବଢ଼ିଲେ । ବର୍ତ୍ତମାନ ଗୃହରେ ଛଅଗୋଟି ଏଣ୍ଡାପୁତ ସମିତି ଅଧୀନରେ ୭ଟି ଶିକ୍ଷା ସର୍କଲ ଅଛି - ଯଥା— ବଣାଇଗଡ,

ଲଡୁଣୀପଡ଼ା, ଖଣ୍ଡଗାଁ, କୋଇଡ଼ା, ଗୁରୁଣ୍ଡିଆ ଓ ବାଙ୍କି ଏବଂ ପ୍ରତ୍ୟେକ ସର୍କଲ ଦାୟିତ୍ୱରେ ଜଣେ ସବଇନ୍‌ସପେକ୍‌ଟର ଅଫ୍‌ସ୍କୁଲସ୍‌ ଅଛନ୍ତି ।

୧୯୬୭ ମାର୍ଚ୍ଚ ତା ୩୧ ରିଖ ସୁଦ୍ଧା ସମଗ୍ର ରାଜ୍ୟରେ ହାଇସ୍କୁଲ— ୧, ସରକାରୀ ପ୍ରସ୍ତାବିତ ହାଇସ୍କୁଲ— ୧, ବେସରକାରୀ ହାଇସ୍କୁଲ— ୨, ବେସରକାରୀ ପ୍ରସ୍ତାବିତ ହାଇସ୍କୁଲ — ୧, ସରକାରୀ ମି.ଇ. ସ୍କୁଲ — ୮,

ବେସରକାରୀ ମି:ଇ. ସ୍କୁଲ ୧୨, ପ୍ରାଇମେରୀ ସ୍କୁଲ ୨୭୮, ବେସରକାରୀ ବାଳକା ମି:ଇ:ସ୍କୁଲ —୧ ଓ ଇ.ଟି. ସ୍କୁଲ — ୧ ଥିଲ ।

ସମଗ୍ର ରାଜ୍ୟର ଛାତ୍ର ଛାତ୍ରୀ ସଂଖ୍ୟା ଥିଲ—

ହାଇସ୍କୁଲ— ୯୯୫

ମି:ଇ:ସ୍କୁଲ— ୧୩୭୫

ପ୍ରାଇମେରୀସ୍କୁଲ— ୧୩,୧୭୦

ଉପରୋକ୍ତ ବିବରଣୀରୁ ପ୍ରମାଣିତ ହୁଏଯେ ଅଳ୍ପଦିନମଧ୍ୟରେ ବଣାଇଁର ହାଇସ୍କୁଲ ଗୁଡ଼ିକ ଗୋଟିଏ କଲେଜକୁ ଛାତ୍ର ଯୋଗାଇବାକୁ ସମର୍ଥ ହେବେ ।

ପ୍ରାଚୀନ ବଣାଇଁ ରାଜ୍ୟର ଶିକ୍ଷାର ଉନ୍ନତପାଇଁ ତତ୍‌କାଳୀନ ଜନସାଧାରଣ, ବିଦ୍ୟାଳୟ ପରିଦର୍ଶକ ଓ ରାଜାସାହେବ କିପରି ଆଗ୍ରହୀ ଓ ଉତ୍ସାହୀ ଥିଲେ ତାର ପ୍ରମାଣସ୍ୱରୂପ ପରିଚାଳନା କମିଟି ବିବରଣୀର ଏକ ନକଲ, ଜଣେ ବିଦ୍ୟାଳୟ ପରିଦର୍ଶକଙ୍କର ମନ୍ତବ୍ୟର ନକଲ ଓ ରାଜାସାହେବଙ୍କର ବିଦ୍ୟାଳୟ ପରିଦର୍ଶନର ଏକ ନକଲ ଏଥିସହ ସଲଗ୍ନ କରାଯାଇଅଛି ।

## ପରିଚାଳନା କମିଟି ବିବରଣୀର ଏକ ନକଲ

ଅଦ୍ୟ ଆମ୍ଭେମାନେ ସ୍କୁଲରେ ଉପସ୍ଥିତ ହୋଇ ଦେଖିଲୁଯେ ସ୍କୁଲ ଏଟେଣ୍ଡାନ୍‌ସ୍‌ ରେଜିଷ୍ଟର ଅନୁକ୍ରମ ବାଳକ ଓ ବାଳିକା ମାନଙ୍କର ମୋଟ ସଂଖ୍ୟା ଜ ୫୨ ଣ ମଧ୍ୟରୁ ବାଳକ ଜ ୪୦ ଣ ଓ ବାଳିକା ଜ ୨ ଣ ଉପସ୍ଥିତ ହୋଇଥିଲେ; ଇତିପୂର୍ବ କମେଟିର ଉପସ୍ଥିତି ସମ୍ବନ୍ଧରେ ବର୍ତ୍ତମାନ ଉପସ୍ଥିତ ସଂଖ୍ୟା ଅନୁମାନକଲେ ଉତ୍ତମ ହୋଇଅଛି ।

ସଦର ସ୍କୁଲରେ ବାଳିକାମାନଙ୍କର ସଂଖ୍ୟା ନିତାନ୍ତ କମ ଥିବା ଦେଖି ଆମ୍ଭମାନଙ୍କର ଅନୁମୋଦନାନୁସାରେ କେତେ ଗୁଡ଼ିଏ ଗଡ଼ ଓ ପାଟଣା ବସ୍ତୀର ବାଳିକାର ଖ ୧ ଣ୍ଡ ଲିଷ୍ଟ ଦିଆଯାଇଅଛି, ଆମ୍ଭେମାନେ ନିଜ ଯତ୍ନରେ ସେମାନଙ୍କର ଅଭିଭାବକମାନଙ୍କୁ ଅନୁରୋଧ କରିବୁଁ ଯେବେ ଏଥିରେ ସେମାନେ ଯତ୍ନବାନ ନହେବେ ଷ୍ଟେଟ ଅଫିସରଙ୍କ ସାହାଯ୍ୟ ନିଆଯିବାକୁ ରିପୋର୍ଟ ହେବ—

ବର୍ତ୍ତମାନ ଆମ୍ଭମାନଙ୍କର ମାନନୀୟ ସମ୍ରାଟ ମହୋଦୟଙ୍କର ଭାରତାଗମନ ସନ୍ଧିରେ ଗୋଟିଏ ଦରବାର ହେବାର କଥା; ସମ୍ପ୍ରତି ସେହି ଉତ୍ସବୋପଲକ୍ଷେ ସମୁଦାୟ ରାଜ୍ୟରେ ନାନାପ୍ରକାର ଆନନ୍ଦର ବ୍ୟାପାର ଲାଗିଅଛି, ଆଗାମୀ ତା ୧୨ ରିଖ ( ସଭାଦିନ ) ଏବ ସ୍କୁଲରେ ଗୋ ୧ ଟି କମେଟି ତାହା ସମୟରେ ସ୍କୁଲ ବାଳକ ଓ ସ୍କୁଲ ମାଷ୍ଟର, ଇନ୍ସପେକ୍ଟିଂ ପଣ୍ଡିତ, ମେମ୍ବର ସମୁଦାୟ ଉପସ୍ଥିତ ହୋଇ କଲେ ଭଲହୁଅନ୍ତା ।

ଉକ୍ତ କମେଟିରେ ସମ୍ରାଟଙ୍କର ହିତ କାମନାରେ ଯଥା ଶକ୍ତି ଗଦ୍ୟ ଓ ପଦ୍ୟାଳଙ୍କୃତ ଶ୍ଳୋକମାନ ନିଜର ପାରଗମତାନୁସାରେ ଦର୍ଶାଇ ଦିଆଯିବା ଭଲ ବିବେଚନା କରୁଅଛୁ, ସ୍କୁଲର ବାଳକମାନଙ୍କୁ ଓ ଅନ୍ୟାନ୍ୟ ସ୍କୁଲ ସମ୍ପର୍କୀୟ ନୌକର ମାନଙ୍କୁ ଏଥି ସମ୍ବନ୍ଧରେ ଯଥାସମ୍ଭବ ମିଠା ଦେବା ଭଲ, ଯଦ୍ୱାରା ସ୍କୁଲ ଗୃହଟି ଆଲୋକ ପୂର୍ଣ୍ଣ କରାଯିବ, ଓ ସଦସ୍ୟ ମାନଙ୍କର ଅଭ୍ୟର୍ଥନା ନିମନ୍ତେ ବ୍ୟୟ ହେବ । ଇତି - ତା ୯ । ୧୨ । ୧୧ ।

Sd/ **J. M. Purohit**
Member
**Bonaigarh**

ସ୍ୱା - ଶ୍ରୀ ପ୍ରାଣକୃଷ୍ଣ ସାହୁ
ସ୍ୱା - ଶ୍ରୀ ଯୋଗୀନାଥ ବେହେରା
ସ୍ୱା - ଶ୍ରୀ ଚନ୍ଦ୍ର ଘଣ୍ଟ

# Copy of Inspection Remarks of Mr. A. G. Deefhe, Agency Inspector of Schools.

I visited the Bonaigarh U.P. School with the Superintendent today, March 20th 1911. Out of 43 pupils, of whom 4 are girls, 37 were present including the 4 girls. The average daily attendance is 37.

There are no pupils, at paesent in the IVth standard.

The boys of the IIIrd Std. did very fairly in all subjects. They were inclined to read rather too fast, and require more practice in explaining what they read.

The boys of the IInd Std. did fairly well in all subjects except Dictation which was bad. The teachers should pay special attention to the subjects of – Reading, Arithmetic, Dictation and Writing and should give their pupils a very careful and through grounding in them.

The progress in the Infant classes is tolerable. The teachers have just been supplied with the new syllabus, so I trust they will now work in accordance with it.

I would recommend, for use in the School, the Drawing books available at the Mission Press, Cuttack; and also the recently published book of Kindergarten Action songs.

The School house is a new building, and serves the purpose well. I trust the want of some furniture and teaching appliances will soon be supplied. Physical exercise in the form of games should be encouraged.

sd/- A. G. Deefhe
Agency Inspector of Schools
20-3-11

## Copy of Inspection Report of Sri Dharanidhar Indradeo Deb, Feudatory Chief of Bonai

I visited the School today and it took me full three hours to finish my inspection. Out of 105 students including the girls on the roll 81 were present. The School has three different sections, the U.P., the L.P. and the Infant each consisting of two classes. There are three teachers altogether but one being on leave only two were present including one Monitor

**Progress and Method of Instruction:-**

I examined the boys of all the classes from top to bottom. I regret to notice that the teaching specially that of Mathematics is not quite up to the mark. The boys in the 3rd and 4rth Standards are defficient in Arithmetic. They could not work out simple sums that

were put to them. They were asked to explain the meanings of some of the passages from their text books already gone through, but their answers did not please me. Their bad pronounciation of simple words, weakness in Arithmetic and want of knowledge of grammar, clearly impressed me with the idea that the method of teaching was not what it should have been. The art of teaching young children is, in my opinion, not an easy task which can be left to any one. The success depends not so much upon the instruction than the right method of teaching which ought to be attractive and amusing to young children, besides giving them regular and systematic mental exercise. An elderly man well experienced in the art of teaching should have been placed at the head of the Institution to teach higher classes and supervise the whole work.

**Discipline:-**

The discipline of the school may be called fair, but I think there should be some improvement on it. The teachers will do well if they keep an eye over the school discipline which is so very important in the formation of charactor which is the end of education. The school is the place where young minds are to be cultured and developed and the forces that are at work there ought to be well regulated so as to lead to the desired result.

**School House:-**

The present house is certainly very small and cannot provide accommodtion to all the students Consequently a class is held in a separate shed which is however very unclean. During my inspection I found lots of dust falling down from the worn out frame of the thatch

of the latter. The accommodation is still quite insufficient for the boys and I hope the school committee will kindly see their way to relieve the congestion as soon as possible.

I cannot say much anything about the lack of furniture when there is no sufficient room for the students.

## The School Register:-

The school register should be properly checked and the entries there in should be made carefully. I may give here an instance of carelessness which I found in the Attendance Register. A boy of the 1st Infant class was marked present for 14 days although he was realy present for 15 days. This is ofcourse a trifling thing, but it gose a great way, specially in a school, where the carelessness and inattention of the teachers are easly and unconciously imitated by the boys under their care.

## The School Committee:-

From the book of the School Committee I gathered that there were no systematic rules for sitting of the Committee It was pointed out by the Suqerintendent of the State, but I wonder why necessary steps have not been taken Although some of the members pay occasional visits to the school, they do not appear to have taken any lively interest in it. I regret they are not quite aline to their duties for they do not appear to have suggested any thing for the improvement of the school which has been commited within core.

I asked the Headmaster to provide me with a list of the names of the members, but I was surprised to learn that he did not know even the names of some of them. This is absurd and unnatural. I may conclude now making one or two remarks. It is a matter of great regret that these defects and irregularities which strike even a casual observer, have hitherto passed unnoticed. They should not have escaped the notice of the Inspecting Pandit.

A smart little boy of the 2nd standard worked out all the sums that were put to the higher class. He seemed to be well up in Mathematics and other subjects. I promoted him to the next higher class as an encouragement to the boy and to set an example to the students in general.

sd/- **Dharaindhar Indradeo Deb**
2-6-14
Feudatory Chief of Bonai.



Printed at The Standard Press Uditnagar, Rourkela- 1. Phone:- 3388

